# ଶ୍ରୀ ଭାଗବତ

# ଦ୍ୱାଦଶସ୍କନ୍ଧ ଟୀକା

ଭଜନ ।

ଶ୍ରୀ ଶମ୍ଭୁନାଥ ମହାପାତ୍ରଙ୍କ ଦ୍ୱାରା ରଚିତ ଓ ସଂଶୋଧିତ ।

ଶ୍ରୀ ମହତାପ ସିଂହଙ୍କ ଦ୍ୱାରା ପ୍ରଥମବାର ମୁଦ୍ରିତ ହେଲା ।

CUTTACK:

PRINTED AT THE DARPUN RAJ PRESS.

1899.

ମୂଲ୍ୟ ପାଞ୍ଚ ପଇସା ।

# ଶ୍ରୀ ଭାଗବତ ଦ୍ୱାଦଶସ୍କନ୍ଧ ଟୀକା ଭଜନ ।

---

ପ୍ରଥମ ସ୍କନ୍ଧ । ରାଗ—ଭଗବତ ବୃତ୍ତ ।

## ଭଗବତଟି ଅଟେ ସାରରେ

ଭାବ ପାଇଲେ ଭବ ପାରରେ, ଯମ ଯାତନା ହେବ ଦୂରରେ । ପଦ ।

ଶୁକ ସନକାଦି ମୁନିମାନେ ମିଳିଣ । ସୂତେ ପୁଚ୍ଛା କଲେ ଭାଗବତ ପୁରାଣ । ଯାହା କହିଲେ ସୂତ, ପ୍ରଥମର ତତ୍ତ୍ୱ । ଯଦୁ ବଂଶ ସାତ୍ତ୍ୱତ, କୁଳେ ଯାଦବଙ୍କ ଜାତ । ତାଙ୍କ ମହିମା ଏଥି ପ୍ରଚୁରରେ । ୧ । ଭକ୍ତି ଯୋଗ ସାଂଖ୍ୟ ଯୋଗ ବୈରାଗ୍ୟ ଜ୍ଞାନ । ଜ୍ଞାନାଶ୍ରୟ ବ୍ରହ୍ମ ତାଙ୍କ ମହିମୋତ୍ତମ । ନାରଦ ବ୍ୟାସଙ୍କର, ବଦ୍ରିକାର ବିଚାର । ବ୍ୟାସ ନାରଦ ଠାରୁଁ, ଶ୍ରୀଭାଗବତ ପାଇ । କହିଲେ ତିନି ଜନ୍ମ ଦୂରିଭରେ । ୨ । ପଶ୍ଚ କଟକ ରାଜନ ସେ ଦୁର୍ଯୋଧନ । ସମରେ ତାହାର ଜାନୁ ହୋଇଥିଲେ ଭଗ୍ନ । ସେ ସ୍ଥାନେ ଦ୍ରୂପ ବ୍ରହ୍ମା, ମିଳିଲେ ଅଶ୍ୱତ୍ଥାମା । ପାଣ୍ଡବଙ୍କୁ ନାଶାର୍ଥେ, ବିଚାର କଲେ ତତ୍ତ୍ୱେ । ସେସି ପଞ୍ଚାଳ ଭୂମରେ ଶରରେ । ୩ । ପଞ୍ଚ ପୁତ୍ର ବଧ ଶୁଣି କୃଷ୍ଣ ଅର୍ଜୁନ । ଯୁଦ୍ଧେ ଜିଣି ଶିରୋମଣି କରୁଁ କର୍ତ୍ତନ । ସେମାନେ ଅଶ୍ୱତ୍ଥାମା, ପାଣ୍ଡବେଜର ବ୍ରହ୍ମା । ଉତ୍ତରା ଗର୍ଭେ ବାଳ, ସେହିକ୍ଷଣ ବ୍ରହ୍ମ ଷର । ତହୁଁ ରକ୍ଷିଲେ ଚକ୍ରେ ଶ୍ରୀଧରରେ । ୪ । ଭ୍ରାତୃଙ୍କ ଭୁଜେ ପ୍ରସ୍ତାବ କଲେ ପାଣ୍ଡବ । ପରେ ଯୁଧିଷ୍ଠିରଙ୍କ ଅଶ୍ୱମେଧ ଆରମ୍ଭ । ପରୀକ୍ଷିତ ରାଜପଣ, ଦେଇ ସ୍ୱର୍ଗାରୋହଣ । କୃଷ୍ଣ ବୈକୁଣ୍ଠ ଗତ, ଯାଦବେ ହେଲେ ହତ । ପରୀକ୍ଷିତ ଦଗଜୀତ ବାହାରରେ । ୫ । ଏକଷଠି ବର୍ଷ ଶେଷ କରଣ ରାଜ୍ୟ । ତାପରେ ମୃଗୟା ଅର୍ଥେ ପରୀକ୍ଷିତ ବଳେ । ଶମୀକ ଆଶ୍ରମରେ, ତୃଷାତୁରେ ମିଳିଲେ । କ୍ରୋଧେ ଗରୁ କୋପ, ମୁନି ଗଳାରେ ସର୍ପ । ଦିଅନ୍ତେ କହିଲେ ପାପ କ୍ରୋଧରରେ । ୬ । ତଦନ୍ତେ ନୃପତି ଗଙ୍ଗାକୂଳେ ପ୍ରବେଶ । ଶପନ କଲେକ ଶନ୍ଧ୍ୟା କଥା ଶୁଣ । ତହୁଁ ସକଳ ବ୍ରହ୍ମ,

ଋଷିମାନେ ଅଗମ । ଶୁକଙ୍କ ଶ୍ରୀଚରଣେ, ପରୀକ୍ଷ ନମସ୍କାରଣେ । ପୁଚ୍ଛି ଭାଗବତ ଯୋଡ଼ କରରେ । ୭ । ପରୀକ୍ଷ କହନ୍ତି ଭୋ ଋଷି ଶାସ୍ତ୍ରଜ୍ଞାତା । କର ମୁକ୍ତି କହ.ଭାଗବତ ବ୍ୟବସ୍ଥା । ତହୁଁ ଶୁକ ପ୍ରସନ୍ନେ, ଭାଗବତ ଆଖ୍ୟାନେ । ପ୍ରଥମ ଉକବଂଶ, ଅଧ୍ୟାୟରେ ହେଲା ଶେଷ । କହେ ଶମ୍ଭୁ ଜିଉଛନ୍ତି ହରିରେ । ୮ ।

ଦ୍ୱିତୀୟ ସ୍କନ୍ଧ । ରାଗ—ଗଜଗତି ଗଲା କଥା ବୃତ୍ତେ ।

ନର ସୁମନେ ଶ୍ରବଣ ହେ ସୁଜନେ ।
ଯା ନାମ ଶ୍ରବଣେ ପାପ ବିମୋଚନ ଦଣ୍ଡ ନ ଦେବ ଶମନ ହେ । ପଦ ।

ପରୀକ୍ଷିତ ଆଗେ ଶୁକଦେବ କହି । ପରମ ଆତ୍ମା ପୁରୁଷ ବିରାଜଇ । ପ୍ରକାଶ ହେବାକୁ । ଭେଟିବାରେ ତାଙ୍କୁ । ଅଷ୍ଟାଙ୍ଗ ଯୋଗ ଧାରଣ ହେ । ୧ । ଆତ୍ମା ପରମାତ୍ମା ଏ ଅଟନ୍ତି ଏକତ । ପୁଣି ଯେଣୁ ଲୀନ ହୋଇ ଯେଉଁ ମତ । ତ୍ରିକୁଟ ଭେଦଣ ସାକ୍ଷ ଦେଲା ଜ୍ଞାଣ । ତାପରେ ପଶିଲା ପ୍ରାଣରେ । ୨ । ବ୍ରହ୍ମ ନାରଦଙ୍କର ଯେଉଁ ସମ୍ବାଦ । ଅଟେ ଶ୍ରୀଭାଗବତ ଉପନିଷଦ । ବ୍ରହ୍ମାଠୁଁ ନାରଦ । ଶୁଣ ଶ୍ଲୋକେ ଭେଦ । କ୍ଷିତରେ କଲେ ବଖାଣରେ । ୩ । ମନ୍ଦା ବିରାଟ ବୋଲି ଯେଉଁ ପୁରୁଷ । ଯେ ବା ତାଙ୍କର ଉତ୍ପତ୍ତିସ୍ଥିତି ନାଶ । ଚଉବିଂଶ ଲୀଳା । ଅବତାରେ କଲା ତା ପରେ ପଶିଲା ପ୍ରାଣ ହେ । ୪ । ବ୍ରହ୍ମା ଉତ୍ପତ୍ତି ଯେ ବେଦ ତତ୍ତ୍ୱବାଣୀ । ଦ୍ୱିତୀୟ ସ୍କନ୍ଧେ ଏତେ ବଖାଣି । ଦଶାଧ୍ୟା ସମାପ୍ତ । କହେ ଶମ୍ଭୁନାଥ । ସଂକ୍ଷେପେ କରୁ ପୂରଣ ହେ । ୫ ।

ତୃତୀୟ ସ୍କନ୍ଧ । ରାଗ—ଅବକାମନ ଶୁଣ ନିବା ବୃତ୍ତେ ।

ଭଜମନ ଭାଗବତ । ତୃତୀୟସ୍କନ୍ଧ ତତ୍ତ୍ୱ ।
ବିଦୁର ଉଦ୍ଧବ ସମ୍ବାଦ ଏ ଅତି ସୁଲଳିତ । ପଦ ।

ବିଦୁର କବେଣି ତତ୍ତ୍ୱ । ଶ୍ରୀକୃଷ୍ଣଙ୍କ ପାଦଗତ । ମନାନନ୍ଦେ ପ୍ରଶ୍ନ କରନ୍ତି ଯେ ହୋଇ କୃତ କୃତ୍ୟ । ୧ । ବୈକୁଣ୍ଠ ପାତାଳ ସ୍ୱର୍ଗ । ବ୍ରହ୍ମାଣ୍ଡ ଉତ୍ପନ୍ନ ମାର୍ଗ । ବିରାଟ ପୁଂଷଓ କାଳସ୍ଥୂଳ ସୂକ୍ଷ୍ମ ଅବତାରତ । ୨ । ନାସ୍ତି

ପଦ୍ମରୁ କମଳ । ବଖାଣ ଯେଉଁ ପ୍ରକାର । ଦନ୍ତ ପ୍ରଲୟାର୍ଥେ ଏକାର୍ଣ୍ଣ-ବରୁ ବସ୍ୱଦ୍ଧ ଛାଡ । ୩ । ପୃଥ୍ୱୀକି ଦନ୍ତେ ଧରୁ । ହିରଣାକ୍ଷ ବଧ କରୁ । ଦେବ ସିଦ୍ଧ କିନ୍ନର ଗନ୍ଧର୍ବ ବିଦ୍ୟାଧର ଖ୍ୟାତ । ୪ । କିଂଇ ପୁରୁଷ ଏମାନ । ଉତ୍ପତ୍ତିର କାରଣ । ବ୍ରହ୍ମ ଦେହୁଁ ଉତ୍ପନ୍ନ କୀଟ ପତଙ୍ଗ ଗୃହତ । ୫ । ସ୍ଥାବର ଜଙ୍ଗମ ଦେହ । ସ୍ୱେଦ ଅଣ୍ଡଜ ଉଦ୍ଭିଜ । ଦିବା ସନ୍ଧ୍ୟା କାଳୋତ୍ପତ୍ତି ବ୍ରହ୍ମା ସର୍ଜନା ଯେମନ୍ତ । ୬ । ସେ ଶତ ରୂପା କନ୍ୟାର । ଛନମ ରୁଦ୍ର ଏଗାର । ଶନକାଦ ସ୍ୱୟମ୍ଭୂବ ଦେନୀ ତିନ କନ୍ୟା ଜାତ । ୭ । ଯେ ଚଉଦ ପ୍ରଜାପତ । ଯେ କନ୍ୟାଙ୍କର ସନ୍ତତ । ବ୍ରହ୍ମାଙ୍କ ପୁଏ କର୍ଦ୍ଦମ ଦେବହୂତିଙ୍କର କାନ୍ତ । ୮ । ତାହାଙ୍କ ନବ ଦୋହିତା । କଶ୍ୟ ନବ ପ୍ରଜାପତି । କର୍ଦ୍ଦମଙ୍କଠାରୁ ଜାତ କପିଳ ନାମେ ବିଦିତ । ୯ । ଜ୍ଞାନରେ ଯେ ଶ୍ରେଷ୍ଠ ହୋଇ । ଜନନୀଙ୍କୁ ଧର୍ମ କହି । ତପସ୍ୟେ ତେଜିଶଥ୍ୟା ଶେଷ ସ୍ତବ କହେ ଶମ୍ଭୂନାଥ । ୧୦ ॥

ଚତୁର୍ଥ ସ୍କନ୍ଧ ।

ଶ୍ରୀବନରତ । ଚତୁର୍ଥ ସ୍କନ୍ଧେ ଭାଗବତ ।
ଯହିଁରେ ହୋଇଛନ୍ତି ନବ ପ୍ରଜାପତି ଜାତ । ପଦ ।

ଏହାଙ୍କ ବଂଶ ଚରିତ ସଯାର ଯହିଁ ବେଦତ । ଦକ୍ଷପ୍ରଜାପତି ତହିଁ ଯଜ୍ଞ କର୍ମେ ପ୍ରସକ୍ତିତ । ୧ । ଶିବ ଯଜ୍ଞ ଭଗ୍ନ କଲେ । ପାର୍ବତୀ ନାଶେ କୋପିଲେ । ସର୍ବ ଦେବ ସ୍ତୁତିରେ ପାର୍ବତୀ ହିମାଳୟୁ ଜାତ । ୨ । ତାପରେ ଧ୍ରୁବ ଚରିତ । ତପେ ତୋଷିଲେ ଅନନ୍ତ । ମାତା ପିତା ସଙ୍ଗେ ଯେବେଁ ବଇକୁଣ୍ଠେ ଉପଗତ । ୩ । ଶିଶୁ ତଙ୍କେ କେଇ ବାପ । ମନୁ ବଂଶେ ବିଷ୍ଣୁ ଅଂଶ । ତା ଜ୍ୟେଷ୍ଠଭ୍ରାତ ଗୁହ୍ୟକ ଗଣେ ସମରରେ ଜିତ । ୪ । ଧ୍ରୁବ ପୃଥୁ ନାତି ଯେତେ । କହି ଅନୁକ୍ରମତେ । ବିପ୍ର ଶାପେ ପୃଥ୍ୱୀ-କୀରେ ରାଜ ପଦ ହେଲା ହତ । ୫ । ପୃଥ୍ୱୀରୂପେ ଅବତାର । ତାହାଙ୍କ-ବଳେ ଦୁହିଁ କରୁ । ଚତୁର୍ଦ୍ଦଶ ଲୋକରେ ପଯୋଦକ ପରପେତ । ୬ । ପ୍ରାଚୀନ ବର୍ହି ପଦ । କୃଷ୍ଣ ନାରଦ ସମ୍ବାଦ । ପୁରଞ୍ଜନ ଅଖ୍ୟାନ

ଏବଷ ପ୍ରଚେତାର ଜାତ । ୭ । ଦଶ ପ୍ରଚେତେ ତାଙ୍କ ପୁତ୍ର । ହୋଇଲେ ଦକ୍ଷ ନନ୍ଦନ । ବ୍ରହ୍ମାଣ୍ଡ ଯେମନ୍ତେ ଅଟେ ଲୋକାଲୋକ ସମେତ । ୮ । ନାମ ଦକ୍ଷ ପ୍ରଜାପତି । ଯେମନ୍ତେ ହେଲା ଉତ୍ପତ୍ତି । ପରମ୍ଲୋଚା ଅପ୍ସରା କଣ୍ଡୁଋଷି ମାର୍ଜ୍ଜା ଜାତ । ୯ । ଚତୁର୍ଥସ୍କନ୍ଧେ ଏରସ । ଏକତ୍ରିଂଶ ଅଧ୍ୟା ଶେଷ । ବନ୍ଦେ ଶମ୍ଭୁ ଜଉଡିଷ ଧ୍ୟାଇ ଶ୍ରୀକମଳା କାନ୍ତ । ୧୦ ।

### ପଞ୍ଚମ ସ୍କନ୍ଧ ।

କର ମନ । ଶ୍ରୀଭାଗବତଙ୍କ ପଠନ ।
କରକର ପାପପଙ୍କୁ ହୋଇବ ପରିତ୍ରାଣ । ପଦ ।

ପଞ୍ଚମ ସ୍କନ୍ଧରେ ପୁଣି । ପ୍ରିୟବ୍ରତ ଆଦ ବାଣୀ । ନାଭିଙ୍କ ରାଜା ଚରିତ ଋଷଭଙ୍କ ମନ ।୧। ଭରତ ରାଜାର ଜାତ । ତିନି ଜନ୍ମେ ବିଷ୍ଣୁ ଭକ୍ତ । ଭୂଗୋଳ ବର୍ଣ୍ଣନେ ସପ୍ତଦ୍ୱୀପ ଦିବ୍ୟମାନ । ୨ । ସମୁଦ୍ର ସାତ ଯେସନ । ଦଶାଷ୍ଟମର ଭୁବନ । ଲୋକାଲୋକ ସମେତରେ ବ୍ରହ୍ମାଣ୍ଡ ଶୋଭନ । ୩ । ନଦୀ ପରବତ ସାତ । ଯହିଁ ଏହାଙ୍କର ଜାତ । ଜ୍ୟୋତିଷ ଧ୍ରୁବ ସାରସ । ଯେ ଶିଶୁମାରଣ । ୪ । ପାତାଳ ନର୍କ ବର୍ଣ୍ଣିନ । ଯହିଁ ଯେଉଁ ଲୋକମାନ । ପାପଫଳ ବଶେ ଘୋର ନରକେ ପଡନ୍ତି । ୫ । ପଞ୍ଚମ ସ୍କନ୍ଧେ ଏ ବାଣୀ । ଛବିଶାଧ୍ୟା ଶେଷ ପୁଣି । ବନ୍ଦେ ଶମ୍ଭୁନାଥ ମହାପାତର ଅଜ୍ଞାନ । ୬ ।

### ଷଷ୍ଠ ସ୍କନ୍ଧ । ରାଗ—କାମୋଦ ।

ଶ୍ରୀମୁଖ ବାକ୍ୟ ଅଟେ ଶ୍ରୀଭାଗବତ । ପତରେ ମନ ସୁମନେ ରଖି ଚିତ୍ତରେ । ସମରେ ହାନ୍ତି ଯିବ ଶମନ ଦୂତ । ଶ୍ରବଣ କର ଷଷ୍ଠ ସ୍କନ୍ଧ କଥିତ ଯେ ।୧। ଅଜାମିଳର ନାମ ମହିମାମାନ । ବିଷ୍ଣୁ ଓ ଯମଦୂତ-ଙ୍କର ଆଖ୍ୟାନ ଯେ । ଯମ ଯେ ନିଜ ଦୂତେ ବୁଝାଏ ଜ୍ଞାନ । ନ ଯିବୁ ବିଷ୍ଣୁ ଭକ୍ତ ଅଟେ ଯେ ଜନରେ । ୨ । ଅଜାମେଳ ଯେମନ୍ତେ ହେଲା ମୁକତ । ସେ ଯେଉଁ ରୂପେ ବଇକୁଣ୍ଠ ପ୍ରାପତ ଯେ । ଦକ୍ଷ ପ୍ରଜାପତିରୁ ଯେ ହେଲେ ଜାତ । ନାରଦ ହେତୁ ଯେହ୍ନେ ହୋଇଲେ ହତ ଯେ । ୩

ଚତୁଁ ଦକ୍ଷର ହେଲେ ଷାଠିଏ ସୁତା । ସେ ତନୁ ହେଲେ ନଭସ୍ଥଳ ଦେବତା ଯେ । ଷଷ୍ଠ ଯେ ପ୍ରଜାପତି ନନ୍ଦନ ଜାତ । ହିରଣ ହିର-ଣାକ୍ଷ ସେ ଦିତି ସୁତ ଯେ । ୪ । ପୁଣି ଯେତେକ ଏହାଙ୍କ ପତ୍ନୀ ବେଦନ । ତାପରେ ସୁଯଜ୍ଞ ନୃପତି ବିଧାନ ଯେ । ଇନ୍ଦ୍ରର ତ୍ରିତେ ନାଶ କୋହ ପବନ । ଅଣଚାଶ ମରୁତ ଧଷ ଜନମ ଯେ । ୫ । ଏଠାରୁ ହେଲେ ଷଷ୍ଠସ୍କନ୍ଧ ସମ୍ପୂର୍ଣ୍ଣ । ସଂକ୍ଷେପେ ଶମ୍ଭୁନାଥ କରେ ବର୍ଣ୍ଣିତ ଯେ ଊନବିଂଶ ଅଧ୍ୟାରେ ଶ୍ରୀଜଗନ୍ନାଥ । କଲ ଅଷ୍ଟକ୍ଷ ପ୍ରାକୃତରେ ରଚିତ ଯେ । ୬ ।

ସପ୍ତମ ସ୍କନ୍ଧ । —ରାଗ ବାମୋହ ।

ଶ୍ରୀମତ ଭାଗବତ ଶାସ୍ତ୍ରର ଭେଦ । ଶୁଣିବ ଯାବଲେ ଏଥୁଁ ପାଇବ ସ୍ୱାଦ ହେ । ଶେଷେ ମିଳିବ ପୁଣି ସେ ଇନ୍ଦ୍ର ପଦ । ସପ୍ତମସ୍କନ୍ଧରେ ଜନମ ପ୍ରହ୍ଲାଦ ଯେ । ୧ । ସେ ପ୍ରହ୍ଲାଦ ହିରଣ୍ୟ କଶ୍ୟପ ସୁତ । ବିଷ୍ଣୁ ଭକ୍ତି ଭାବରେ ନଗ୍ନ ଚିତ୍ତ ଯେ । ତାର ଯେତେ ଚରିତ ଓ କ୍ଲେଶ ପ୍ରାପ୍ତ । ବିଷ ଅନଳେ ଜଳେ ପାଶ୍ୱବା ହତ ଯେ । ୨ । ଅସୁର ପୁତ୍ରେ ବୋଧି ଭକ୍ତି ତତ୍ତ୍ୱରେ । ନୃସିଂହରୂପ ହରି ତାହାର ସ୍ତମ୍ଭେ ଯେ । ଚତୁର୍ଥାରୂପେ ହିରଣ୍ୟ ବଧ କରି । ତା ପରେ ସ୍ତୁତି ତାକୁ ଭେଟ ବସିଲ ଯେ । ୩ ବ୍ରହ୍ମଚାରୀ ବା ଅନପ୍ରସ୍ଥ ସନ୍ନ୍ୟାସ । ଗୃହୀ ଏ ଚାରି ଧର୍ମାଧର୍ମ ବିଶେଷ ଯେ । ସେଷ୍ଠ ବିଦ୍ୟାଧରରେ ଗୃହସ୍ଥଙ୍କ ସାର । ସପ୍ତମସ୍କନ୍ଧେ ହେଲ ଏତେ ବିସ୍ତର ଯେ । ୪ । ପନ୍ଦର ଅଧ୍ୟା ଶେଷ ଶୁଣ ସୁଜନ । ଶ୍ରୀ ଜଗନ୍ନାଥ ଦାସଙ୍କର ରଚନ ଯେ । ଟୀକାରେ କହେ ଶମ୍ଭୁନାଥ ଜୋଡ଼ିଷ । ଶ୍ରୀ ଯଶୋବନ୍ତ ଗାନ୍ଧ ପାଶରେ ବାସ ଯେ । ୫ ।

ଅଷ୍ଟମ ସ୍କନ୍ଧ । ରାଗ—ଭାଗବତ ଛନ୍ଦେ ।

କର ଶ୍ରୀଭାଗବତ କୀର୍ତ୍ତନରେ । ଘୋର ପାପ ତୋ ହେବ ବର୍ତ୍ତନରେ ।
ଶେଷେ ବୈକୁଣ୍ଠେ କର ନର୍ତ୍ତନରେ । ପଦ ।

ଅଷ୍ଟମେ ଚଉଦ ମନ୍ୱନ୍ତର ଚରିତ । ଭୂତ ଭବିଷ୍ୟତ ବର୍ତ୍ତମାନ ଯେମନ୍ତ । ଗଜେନ୍ଦ୍ରଙ୍କୁ ମୋକ୍ଷଣ । ଗ୍ରାହ ଚକ୍ରେ ନିଧନ । ଶାପରୁ କଲ

୍ରାଣ । ହେଲେ ବୈକୁଣ୍ଠସ୍ଥାନ । ଷଷ୍ଠମନ୍ୱନ୍ତରେ ଅବତୀର୍ଣ୍ଣରେ । ୧ ।
ହୟଗ୍ରୀବାଦ ଅବତାର ଅଗ୍ରହ କୂର୍ମ । କଚ୍ଛପ ନୃସିଂହ ବାମନ ପର୍ଶୁରାମ ।
ଅବତାର ମହିମା । ସେବ୍ୟ ମନ୍ଥନ ସୀମା । ସକଳ ରତ୍ନାମୃତ । ଲକ୍ଷ୍ମୀ
ଅହିତେ ଜାତ । ଉଚ୍ଚଶ୍ରବା ଐରାବତୋତ୍ପନ୍ନରେ । ୨ । ପୁଣି ବାରୁଣୀ
ଅମୃତ ଧନ୍ୱନ୍ତରି । ଧନ୍ୱନ୍ତରି ପୁଣ ମୋହିନୀରୂପ ଧାରଣ । ଶିବ ପାର୍ବତୀ
ସହିତ । ଉଭୟରେ ମୋହେ ମାୟା । ସେ ଅମୃତ ଭକ୍ଷଣ । ରାହୁ ଶିର
ଛେଦନ । ସେଗ୍ରସ୍ତେ ବା ଚନ୍ଦ୍ର ବକ୍ଷର୍ତ୍ତନରେ । ୩ । ବେବେ ଯୁଦ୍ଧ ଅମୃତ
ନ ପାଇ ଅସୁର । ସ୍ୱର୍ଗସ୍ଥିତ ଇନ୍ଦ୍ରପଦ ପସେ ବଳୀର । ବଳ ସ୍ୱର୍ଗ ସେ-
ଗେଣ । ଦାନେ କେ ନାହିଁ ସମ । ପୁତ୍ରଙ୍କ କ୍ଳେଶେ ମାତ । ଅଦିତ
ବଲେ ବ୍ରତ । ତହୁଁ ବାମନ ଜାତ ଯତନରେ । ୪ । ଯଜ୍ଞେ ପଶି
ବଳିଠାରୁ ଦାନ ଗ୍ରହଣ । ନିଷେଧ କରନ୍ତି ଶୁକ୍ର ମନ୍ତ୍ରି ସେ ପୁଣ ।
ବଳ ଢ କର କ୍ରୁଦ୍ଧ । ଭୂମି ଯେ ଏ ଯୁପାଦ । ବାମନ ବିଶ୍ୱରୂପ । ପାଦେ
ପୃଥିବୀ ଗୋପ୍ୟ । ପାଦେ ଆକାଶ ଗଲା । ବାଜ ପୃଷ୍ଠ ଫାଟିଲା । ଅକାଶୁଁ
ହେଲା ଗଙ୍ଗା ପତନରେ । ୫ । ନାଭି କମଳରୁ ପାଦ ହୋଇଣ
ଜାତ । ବଳକ ନେଇ ପାତାଳ ପୁରେ ସ୍ଥାପିତ । ସତ୍ୟ ବ୍ରତ ଚରିତ ।
ପ୍ରଳୟରେ ଯେମନ୍ତ । ଅଷ୍ଟମେ ଏ ଚରିତ । କ୍ରିବିଂଶେ ସମାପତ ।
କହେ ଜୋଡ଼ଷ ଶମ୍ଭୁନାଥ ଅଜ୍ଞାନରେ । ୬ ।

ନବମ ସ୍କନ୍ଧ ।

ପଢ଼ ଶ୍ରୀମଦ୍ଭାଗବତରେ ଭୁ ତତ୍ତ୍ୱରେ ।
ଯହୁଁ କହିତ ଅଷ୍ଟାଦଶ ପୁରାଣ ଜଗନ୍ନାଥ ବରଚିତରେ ଭୁ । ପଦ ।

ନବମସ୍କନ୍ଧ ଚରିତ ଏହୁ ଶୁଣ । ସୂର୍ଯ୍ୟ ବଂଶଙ୍କର ଅଟେ ଯା
କୀର୍ତ୍ତନ । ସୂର୍ଯ୍ୟଙ୍କ ନନ୍ଦନ ବୈବସ୍ୱତ ନାମ । ଇକ୍ଷ୍ୱାକୁ ଏ ବଂଶେ
ଜାତରେ ଭୁ । ୧ । ନାଭାଗଙ୍କ ରାଜାର ସୁତ ଅମ୍ବରୀଷ । ସାଧୁ ବୈଷ୍ଣ-
ବରେ ଭକତ ବିଶେଷ । ଦୁର୍ବାସା କୋପରେ । ଶାପ ଦେଲେ
ତାରେ । ବିଷ୍ଣୁ ତା ଜାଣିଲେ ଶାପରୁ ରଖିଲେ । ଚକ୍ରହିରେ ଚକ୍ର

ପେଶୀଉରେ ଭୁ । ୨ । ଚତୁର୍ଦ୍ଦଶେ ନୃସିଂ ପଶିଲେ ଶରଣ । ଭକ୍ତ ର-
ଖେରଖେ ଅମରଣ ଗ୍ରାସ । ସେ ବଂଶେ ଇଲ୍ଲର ବୁଦ୍ଧ ଯେ କୁମର ।
ତାର ସୋମେ ପ୍ରୀତ । ହୋଇବାରୁ ଜାତ । ସୋମ ସୂର୍ଯ୍ୟବଂଶ ଖ୍ୟା ତ-
ରେ ଭୁ । ୩ । ସୂର୍ଯ୍ୟବଂଶେ ଯେତେ ନରପତି ଜାତ । ଠିକେ ଠିକେ
ଶୁଣ ତାହାଙ୍କ ଚରିତ । ସଗର ହଜାର-ଷାଠିଏ କୁମର । କପିଳ
ଶାପ୍ୟରେ । ବହ୍ନ୍ୟ ଦହିବାରେ । ଗଙ୍ଗା ଆଣେ ଭଗିରଥ ରେଭୁ । ୪ ।
ରାମଚନ୍ଦ୍ର ଦଶରଥଙ୍କ କୁମର । ଯାଗ ରକ୍ଷା କଲେ ବିଶ୍ୱାମିତ୍ରଙ୍କର ।
ଶିବଧନୁ ଭାଙ୍ଗି-ବିବାହ ଶୋଭାଙ୍କି । ନଗ୍ରରେ ମିଳଣ । ନୃପେନ୍ଦ୍ର ରାଜନ୍ ।
କୈକେୟୀ ବନେ ପେଶିଉରେ ଭୁ । ୫ । ପଞ୍ଚବଟୀ ଠାରେ ସୀତାର
ହରଣ । ସେଠାରେ ବଧ ହେଲେ ଖରଦୂଷଣ । ବାଳିଙ୍କ ନାଶି ସ-
ସୁଗ୍ରୀ ରାଜ୍ୟ ଦାନ । ଶ୍ରୀରାମେ ଶରଣ । ପଶେ ବିଭୀଷଣ । ପରେ
ବଧି ଦଶମାଥ ରେ ଭୁ । ୬ । ତହୁଁ ରାମଚନ୍ଦ୍ର ମିଳି ଅଯୋଧ୍ୟାରେ ।
ସୀତାବନେ ମେଣି ଲୋକାପବାଦରେ । କଷ୍ଟ ଦନ ଅନ୍ୟେ-ଅଶ୍ୱମେଧ
କ୍ରତୁ । ପୁତ୍ରେ ରାଜ୍ୟ ଦେଲେ ବୈକୁଣ୍ଠକୁ ଗଲେ । ପରେ ନିମିର
ଚରିତରେଭୁ । ୭ । ଭୃଗୁବଂଶେ ଜାତ ଅଟେ ଯମଦଗ୍ନି । ପୁତ୍ର ପର୍ଶୁରାମ
କ୍ଷତ୍ରୀଙ୍କ ଅଗ୍ରଣୀ । ସହସ୍ର ଅର୍ଜ୍ଜୁନ । ବଧ ବନାଶନ । ଏକବିଂଶ
ବାର । କ୍ଷେତ୍ରୀଙ୍କି ସଂହାର । ତଦନ୍ତେ ସୋମ ଚରିତ ରେ ଭୁ । ୮ । ପୁରୁ-
ରବା ପୁତ୍ରି ଉର୍ବଶୀ ସଙ୍ଗରେ । ବିଭୋଳ ହୋଇଲେ ଯେଉଁ ପ୍ରକାରରେ ।
ଅନ୍ଧୁକ ନୃପତି । ନହୁଷ ଜାତ । ଦୁଷ୍ମନ୍ତ ବଧାନ । ଶକୁନ୍ତଳା ଖ୍ୟାନ ।
ଶାନ୍ତନୁ ଭରତ ଚରିତରେ ଭୁ । ୯ । ଭୀଷ୍ମଙ୍କ ବଂଶ ଉତ୍ପତ୍ତି ନୋହିବା ।
ଚିତ୍ର ବିଚିତ୍ର ବୀର୍ଯ୍ୟଙ୍କ ଜନମିବା । ଅପୁତ୍ରିକେ ନାଶ । ତହୁଁ ବେଦ-
ବ୍ୟାସ । ଧୃତରାଷ୍ଟ୍ର ବିଦୁର । ପଣ୍ଡୁବ୍ୟାସ ବୀର୍ଯ୍ୟର । କଉରବଶତେ
ଭ୍ରାତର ଭୁ । ୧୦ । ଏହାଙ୍କ ସନ୍ତତି ନୃପ ପରୀକ୍ଷିତ । ଭାଗବତେ
ଯାହାଙ୍କ ନାମ ବିଦିତ । ଯଯାତିଙ୍କ ଜ୍ୟେଷ୍ଠ । ପୁତ୍ର ଯଦୁଶ୍ରେଷ୍ଠ । ବଂଶ
ଯାଦବରେ । ଅନନ୍ତ ପ୍ରଭୁରେ । ଏ ଆଦ ଶୁଣି ଅଚ୍ଛଉରେ ଭୁ । ୧୧ ।

ଦ୍ୱିତୀୟ ପୁତ୍ର ଭଜମସୁ ବଂଶେ ଜାତ । ପଶ୍ଚିମରେ ନୃପତିପଣେ ବସତ ।
ତୃତୀୟ ଦିବ୍ୟକ । ବଂଶେ ବନସ୍ପେଙ୍କ । ଯନ୍ତ୍ରୁଧୁଥରେ । ଗାନ୍ଧାର
ଦେଶରେ । ଏ ଆଦ ଶୁଣିଅଛୁ ତରେ ଭୂ । ୧୬ । ଯଦୁ ପଞ୍ଚପୁତ୍ର
ସହସ୍ରେକ ଶ୍ରେଷ୍ଠ । ବଂଶେ ଘୃତାର୍ଜୁନ ପର୍ଶୁରାମ ନଷ୍ଟ । ଦ୍ୱିତୀୟ
ପ୍ରଦୋଚ । ବଂଶେ ଜନ୍ତୁପନ । ତୃତୀୟ ଯେ କ୍ରୋଷ୍ଟୁ । କଂସ୍ତୁ ବଂଶେ
ଶ୍ରେଷ୍ଠ । ସୁରସେନ ବସୁଦେବ ତରେ ଭୂ । ୧୩ । ଚତୁର୍ଥ ପୁତ୍ରର ନାମ
ଅଟେ ନୀଳ । ତା ବଂଶେ ପାଣ୍ଡବ ସୁଜ୍ଞାତିରେ ସାର । ପଞ୍ଚ ପୁତ୍ର ଅନ୍ଧକ ।
ଉଗ୍ରସେନାଦିକ । କୁରୁବଂଶେ ପୁଣ । ରାଜା ସୁରସେନ । ଗାଡକନ୍ୟା
ଦଶ ସୁତରେ ଭୂ । ୧୪ । ଜ୍ୟେଷ୍ଠ ବସୁଦେବର ଅଠର ନାରୀ ।
ରୋହିଣୀ ମଦଶ୍ୱ ଯେ ଭାଦ୍ର ବୈଶାଲୀ । ସୁନମଷ ଦେବୀ । ଶାନ୍ତ ଓ
ସୁଦେବୀ । ବୃକଦେବୀ ଯେ ଦେବକୀ ଉପଦେବୀ । ବସୁଦେବ ବଡ଼ା-
ହିତରେ । ଭୂ । ୧୫ । ସୁତନୁ ବଡ଼ମା ପୁଣ୍ୟର ସୁହୃମା । ନରଥ
କପିଳା ଗୃହ ଶୁଦ୍ର କନ୍ୟା । ରୋହିଣୀ ଗର୍ଭରେ । ବଳଦେବ ଜନ୍ମିଲେ ।
ଦେବକୀର ଅଷ୍ଟ । ଗର୍ଭେ ଜାତ କୃଷ୍ଣ । ରୋହିଣୀ ସୁଭଦ୍ରା ଯାତରେ
ଭୂ । ୧୬ । ନବମସ୍କନ୍ଧରେ ଏମନ୍ତ ଚରିତ । ଚତୁର୍ବିଂଶ ଅଧ୍ୟା
ଅଟେ ସମାପତ । ବଂଶାନୁ ଚରିତ । ଅଟଇ ବସତ । ସଙ୍କ୍ଷେପେ କୃତ ।
ଦାସ ଜଗନ୍ନାଥ । ଟୀକାରେ ଶମ୍ଭୁ ଭକ୍ତିଚରେ । ୧୭ ।

ଦଶମସ୍କନ୍ଧ । ରାଗ—ଭଗବତ ବୃତ୍ତେ ।

ଶୁଣ ଶ୍ରୀଭାଗବତ ସୁମନରେ ।
ଯେଉ ଶବଟ୍ଟ ଜାତ ଶମନରେ । ଦଶମେ କୃଷ୍ଣଚନ୍ଦ୍ର ଜନମରେ । ପଦ ।
ଅଦ୍ୟେ ବସୁଦେବ ଦେବକୀରେ ବିବାହ । କଂସ ଅକାଶ ବାଣୀ
ତର ପାଇ ସଂଶୟ । ବସୁଦେବେ ମାରନ୍ତେ । ସତ୍ୟେ ସେ ବନ୍ଧ ଚଲେ
ଚନ୍ଦ୍ରୁ ଯେ ଦେବଗଣ । ବ୍ରହ୍ମାଙ୍କ ସଙ୍ଗତେଣ । କ୍ଷୀରାର୍ଣ୍ଣବ ତୀରରେ ।
ଗୁହାରି କଲେ ଖରେ । ବିଷ୍ଣୁ ପ୍ରସନ୍ନ ହୋଇ । ସବ ବୃତ୍ତାନ୍ତ କହି ।
ଦେବକୀ ଅଷ୍ଟମଗର୍ଭେ । ଜାତ ହୋଇବା ଅମ୍ଭେ । ନନ୍ଦେ ଜରତା କଂସ

ନାଶନରେ ।୧। ଏ ଅନ୍ତେ ଦେବକୀ ଛଅ ପୁତ୍ର ନିଧନ । କଳ
ହୁଷ୍ଟ କଂସ ଦୁଷ୍ଟ ମନ ହୋଇଣ । ଯୋଗ ମାୟାକୁ ଡାକ । ଶ୍ରୀକୃ
ଆଜ୍ଞା ଦେଇ । ଦେବକୀ ସପ୍ତ ଗର୍ଭ । ବଳଦେବ ହରିବୁ । ରୋହିଣ
ଗର୍ଭେ ଥୋଇ । ଅଷ୍ଟମେ ମୁଁ ଜନ୍ମିବଇ । ଶ୍ରୀକୃଷ୍ଣ ଆଜ୍ଞା ପାଇ । ଯେ
ଯୋଗ ମାୟା ଚଳ । ଦେବକୀ ଗର୍ଭ ହରି । ରୋହିଣୀ ଗର୍ଭେ ଭରି
ଲୋକେ ଜାଣିଲେ କେଣେ ଉଭା ନରେ । ୨ । ଏଥଅନ୍ତେ
ଅଷ୍ଟମ ଗର୍ଭେ ଶ୍ରୀକୃଷ୍ଣ ଜାତ । ବସୁଦେବ ଶ୍ରୀକୃଷ୍ଣରେ ସ୍ତୁତି ଗାଇଲ
ଶ୍ରୀକୃଷ୍ଣ ସବୁ କହି । ବସୁଦେବ ଯେ ନେଇ । ସ୍ଥାପିଣ ନନ୍ଦ ଘରେ
କନ୍ୟା ଆଣି ସୂତିରେ । କଂସ ନେଇ କଚାଡ଼ିଲେ । କଗ୍ରଡ଼ନେ
ଶିଳାରେ । ସେ କନ୍ୟା ଶୂନ୍ୟେ ଯାଇ । କଂସକୁ ସବୁ କହି । ନନ୍ଦ
ମୁଁ ତୋ ବଇରି । ରହିଛି ଗୋପପୁରି । ତା ଶୁଣି ଉଚ୍ଚାଟ କଂସ ମନରେ ।
ତଦନ୍ତରେ କୃଷ୍ଣ ଗୋପପୁରେ ରହିଲେ । ପୟଦ ସନେ ଶୋଷିଲେ
ପୂତନା ପ୍ରାଣ । ମାସକରେ ଶକଟ । ତ୍ରିମାସେ ତୃଣା ନଷ୍ଟ । ତ୍ରିମାସ
ବର୍ଷ ବନ । ଦେଖି ନାମ କରଣ । ସେ ମୃତ୍ତିକା ଭକ୍ଷଣ । ପରେ ଦଧି
ମନ୍ଥନ । ଦଧିଖଣ୍ଡ ଭଞ୍ଜନ । କରୁ କଟି ବନ୍ଧନ । ପାପୁଂ ଜାମଳାର୍ଜ୍ଜୁନ ।
କଲେ ପ୍ରଭୁ ତାରଣ । ତା ପରେ କଲେ ବୋଧ ଗୋଷଣରେ । ୪ । ତହୁଁ
ବକା ବତ୍ସାସୁର କଲେ ନିଧନ । ତଦନ୍ତରେ କଲେ ବ୍ରହ୍ମା ବତ୍ସା ହରଣ
ବତ୍ସା ବାଳକ ଯାତ । କଲେ ଶ୍ରୀଜଗନ୍ନାଥ । ବ୍ରହ୍ମା ଯେ ସ୍ତୁତି କଲେ ।
ବତ୍ସା ଫେରାଇ ଦେଲେ । ଧେନୁକାକୁ ନାଶିଣ । କଲେ କାଳୀ ଦଳନ ।
ବଧି ପ୍ରଲମ୍ବାସୁର । ଭକ୍ଷିଲେ ଦାବାନଳ । ତୋଷି ଗୋପ କୁମର ।
ଗର୍ଭରୁ ଅଜଗର । ତଦନ୍ତେ କଲେ ବସ୍ତ୍ର ହରଣ ହେ । ୫ । ତହୁଁ
ଯଜ୍ଞ ପତ୍ନୀଠାରୁ ଅନ୍ନ ଗ୍ରହଣ । ଇନ୍ଦ୍ରୋତ୍ସବ ଭଙ୍ଗି ଗୋବର୍ଦ୍ଧନ ଧାରଣ ।
ଇନ୍ଦ୍ରେ ଅନେକ ସ୍ତୁତି । କଲ୍ପକ ଅଭିଷେକ । ଏକାଦଶୀରେ ସ୍ନାନ ।
କରୁ ନନ୍ଦ ଗ୍ରହଣ । ବରୁଣ ହରି ନେଇ । କୃଷ୍ଣ ଦର୍ଶନ ପାଇ ।
ଗୋପେ ଗୋପାଳ ହେଜ । ପ୍ରଭୁ ଶ୍ରୀଚକ୍ରପାଣି । ବରୁଣର ଭବନ ।

ତଦଂାଧର ମୋକ୍ଷଣ । କାନନେ ଗ୍ରସ ଯେ ଗୋପେଗଣ ହେ । ୬ ।
ଗୋପିଙ୍କ ଭକତି ଦୃଢ଼ ବୁଝିବା ପାଇଁ । ବ୍ରହ୍ମା ଘେନ ଅନ୍ତର
ତ୍ରୁଣ୍ଡାଗ୍ର ଗୋପାଇଁ । ଗୋପେ କୃଷ୍ଣ ନ ଦେଖି । ହୋଇଲେ ଝଳମାଖି ।
ବନ ଗହନ ଖୋଜି । ଶ୍ରୀପାଦ ପଦ୍ମ ହେଜ । ଦେଖିଣ ଦୃଢ଼ପଣ ।
ମିଳିଲେ ଭଗବାନ । ଗୋପି ଗୋଷ୍ଠେ ଏକ । କୃଷ୍ଣ କଲେ ରଚକ ।
କରଣ ରତି ରସ । ପୂର୍ଣ୍ଣ ଗୋପିଙ୍କ ଆଶ । ଶଙ୍ଖ ବ୍ୟୋମା ଷଣ୍ଢ
ସଂହାରଣ ହେ । ୭ । ଧନୁ ଯାଗ କର କଂସ ଅକ୍ରୂର ପେଷି । ମଥୁରା
ଗମନେ କୃଷ୍ଣ ରଥରେ ବସି । ଦେଖି କୃଷ୍ଣ ଗମନ । ଗୋପେ ଏ ହେଲେ
କ୍ଷୀଣ । ଅକ୍ରୂର ଜଳେ ସ୍ନାନ, ଦେଖିଲା ଭଗବାନ । ମଥୁରା ପୁରେ ମିଳି ।
ରଜକ ବଧ କରି । ସୁଦାମାରେ ମୋକ୍ଷଣ । କୁବୁଜା ଗନ୍ଧଦାନ ।
ଚାଣୂର୍ଦନ୍ତୀ ମୁଷ୍ଟିକ । ଶତେ ମାଲ ନାଶକ । ମଞ୍ଚା ଉପରେ କଂସ
ନିଧନ ହେ । ୮ । ମଥୁପୁରେ ଉଗ୍ରସେନ ରାଜା କରାଇ । ମାତା ପିତା
ଦୁଇ ବନ୍ଧନୁ ମୁକୁଳାଇ । ବିଦ୍ୟା ପଠନ ପାଇଁ । ଅବନ୍ତୀ ଦେଶ ଯାଇ ।
ଯମ ଭୁବନୁ ପୁଣି । ଗୁରୁଙ୍କ ପୁତ୍ର ଆଣି । ମଥୁରାରେ ପ୍ରବେଶି । ଉଦ୍ଧବେ
ଗୋପେ ପେଷି । ଗୋପି ଦେଖି ଉଦ୍ଧବ । ରୋଦନ କଲେ ସର୍ବେ ।
ସ୍ୱକୃଷ୍ଣ ଦୂତ ଜାଣି । ପ୍ରେମେ କହିଲେ ବାଣୀ । କୁବୁଜା ଗୃହେ ଭଣ୍ଡିଁ
ଗମନ ହେ । ୯ । ଡାକି ଅକ୍ରୂରକୁ ପେଷି ହସ୍ତିନା ପୁର । ପାଣ୍ଡବ
ଅଖ୍ୟାନ ଜାଣି ଆସ ସତ୍ୱର । ଜରାସନ୍ଧ ଧାଡିରେ । ଦେଲ୍ଲ ମଥୁରା
ପୁରେ । ସେ ଅଷ୍ଟା ଦଶବାର, ତା ଅକ୍ଷୟୂଣି ବଳ । କାଳ ଯବନ
ନେଇ । ମୁଚୁକୁନ୍ଦରେ ଦହି । ତହିଁ ଦ୍ୱାରକା ପୁର । ନିର୍ମିଣି ଚକ୍ରଧର ।
ସର୍ବ ଯାଦବ ଘେନି । ସଦ୍ୱାର କମୁ ଆଣି । ତଦନ୍ତେ ରୁକ୍ମଣୀର ହରଣ
ହେ । ୧୦ । ଜରା ସନ୍ଧ ଜିଣି ବଂଧୁ ଧେମନ୍ତ ପୁଣି । ରୁକ୍ମଣୀର ଗର୍ଭେ
ଜନ୍ମ ନାମ ପଦ୍ମୁନ । ବଧି ଶମ୍ବରାସୁର । ବନ୍ଧିଭ ନେଲେ ତାର । ସୁମନ୍ତକ
ହରଣ । ପ୍ରସ୍ନଜିତ ନାଶନ । ଜମ୍ବେବ ଠାରୁ ମଣି । ଆଣି କାନ୍ତିତା
ରାଣୀ । ବିଭା ସତ୍ୟ ଭାମାରେ । ଇନ୍ଦ୍ର ପ୍ରସ୍ଥେ ଚଳିଲେ । ଭଗ୍ନ ସୁଖେ

ବିହର । ଯେ ପ୍ରଭୁ ଶିଏଧାନ୍ତ । ଶଙ୍ଖାଜିତ ଶତଧନୁ ନାଶନରେ । ୧୧ ।
ନାରକାସୁରକୁ ଯେ ପ୍ରଭୁ ବଧ କରି । ତା ଠାରୁ ଆଣିଲେ ଷୋଳ
ସହସ୍ର ନାରୀ । ତା ପୁର ଦ୍ରବ୍ୟମାନ । ପାରିଜାତ ହରଣ । ଚନ୍ଦ୍ର ଉଷା
ହରଣ । ଯୁଦ୍ଧ କଲ୍ପିକ ବାଣ । ହରି ହରଙ୍କ ରଣ । ବାଣାଭୁଜ
ଛେଦନ । ନୃପରାଜା ଆଖ୍ୟାନ । ରାମ ଗୋପେ ଗମନ । ବାଦମ୍ବରଣ
ପାଣେ ସ୍ନାହାନ ହେ । ୧୨ । କାଶି ନଗ୍ର ଧ୍ୱଂସି ବିବିଧ କପି ନାଶି ।
ସାମ୍ବ ବିବାହେ ହସ୍ତିନା ଗାଜନେ ଅସି । ଲକ୍ଷଣର ହରଣ । ନାରଦ
ଦରଶନ । ଇନ୍ଦ୍ରପ୍ରସ୍ଥେ ପାଣ୍ଡବ, ଦୂତ ଅସିଣ ଯବ । ଜରାସନ୍ଧ ନାଶିଣ ।
ରାଜାମାନଙ୍କୁ ତ୍ରାଣ । ରାଜସୂୟ ଯଜ୍ଞ ଅର୍ଥେ । ବଧ ଶିଶୁପାଳନ, ବାସୁ-
ଦେବ ଯେ ତନ୍ତ୍ର । ବହୁପୁଣ୍ୟକ ନାମ । ସାଲ୍ୱ ସହିତେ କଲେ ନାଶନ
ହେ । ୧୩ । ଦନ୍ତ୍ୟ ବିଜନ୍ୟ ସନାନ୍ତ ଶାପ୍ୟ ପାଇଣ । ହିରଣାଦି ସହ
ରାବଣ କୁମ୍ଭ କର୍ଣ୍ଣ । ଶାଲ୍ୱ ଯେ ଶିଶୁପାଳ । ଏ ତିନି ଜନ୍ମ ପାଇ । କୁରୁ
ପାଣ୍ଡୁ ବିରୋଧ । ମହାଭାରତ ଯୁଦ୍ଧ । କୁରୁବଳ ସହିତେ । ଦୁଷ୍ଟ ନୃପତି
ଯେତେ । ଏ ସର୍ବ ସଂହାରଣ । କଲେ ଧର୍ମ ନନ୍ଦନ । ଯଷ୍ଟିକଣ୍ଠକେ
ରାଜ, ହେଲେ ପଣ୍ଡୁ ତନୁଜ । ହରି ଅଗ୍ରଜ ତୀର୍ଥେ ଗମନ ହେ । ୧୪
ସକଳ ଋଷିଙ୍କ ମଧ୍ୟେ ଅନନ୍ତ ଠେକ । ପୂର୍ବେ ଯାହାଙ୍କ ନାମ ସୂତ ପୁରା-
ଣିକ । ଅଶନ ନ ଉଠନ୍ତେ । ରାମ କୋପିଲେ ତତେ । କାଟି ତାହାଙ୍କ
ଶିର । ପୁତ୍ରରେ ଅଧିକାର । ବ୍ରହ୍ମହତ୍ୟା ଦୋଷେଣ । ଗମିଲେ ତୀର୍ଥ-
ମାନ । ଦାନ ସୁଦାମା ଦ୍ୱିଜେ । ଦେଇ ଅଷ୍ଟ ଐଶ୍ୱର୍ଯ୍ୟ । ସକଳେ
କୁଣ୍ଡ ହୋଇ । ଗୋପି ଗୋପାଳେ ଯାଇ । ବିହରି ତହିଁ ସର୍ବ ରାଜନ
ହେ । ୧୫ । ଏଥନ୍ତେ ଶ୍ରୀ ଚକ୍ରଧର ଦ୍ୱାରକା ପୁରେ । ବିହାର କରନ୍ତି
ପୁତ୍ର ନାତି ସଙ୍ଗରେ । କୃଷ୍ଣର ଯେତେ ବଂଶ । ପୁତ୍ର ନାତି ବିଶେଷ ।
ଜଳକ୍ରୀଡ଼ାର ବାଣୀ । ଏଥି ଯେତେ କାହାଣୀ । ହଂସ ଦୂତାଦିମାନ ।
ସ୍ତ୍ରୀରାଙ୍କର ବର୍ଣ୍ଣନ । ନବେ ଛପଧ୍ୟାୟରେ । ଜଗନ୍ନାଥ ପ୍ରଶ୍ନରେ ।

ଦଶମ ହେଲା ଶେଷ । ପ୍ରାକୃତବନ୍ଧକରଣ । ସଂକ୍ଷେପେ ସ୍କନ୍ଧ ପ୍ରକାଶ ଷମ୍ପୂ ଅଜ୍ଞାନ ହେ । ୧୬ ।

ଏକାଦଶ ସ୍କନ୍ଧ । ରାଗ— ଭଗବତ ବୃତ୍ତେ ।

ଏକାଦଶେ ଶ୍ରୀଭାଗବତ ଭାବ ମନ ।
ଭାବ ପାଇଲେ ତତ୍ତ୍ୱେ ପାଇ ବ୍ରହ୍ମ ଜ୍ଞାନ । ପଦ ।

ବ୍ରହ୍ମାଦି ସହିତେ ସର୍ବ ଦେବତା ଆସି । ଶ୍ରୀକୃଷ୍ଣ ଚରଣତଳେ ଚଉ କହେଣି । ମର୍ତ୍ତ୍ୟ ଉତ୍ପାତ କଲ । ଥିବା ନୁହଇ ଭଲ । ଶତେ ପଚିଶ ବର୍ଷ । ଏ ଅବତାର ଶେଷ । ନିଜଧାମକୁ ଚଳ । ହେଲା ଅମ୍ଭ କୁଶଳ । ଶୂନ୍ୟ ବୈକୁଣ୍ଠପୁର । ଶୀବାକୁ ଅଜ୍ଞା କର । ଏମନ୍ତେ କୃଷ୍ଣ ଶୁଣି । କଲେ ଚିତ୍ତେ ଭାଳେଣି । ଯଦୁ ବଂଶ ନାଶିବା ପୁଣି ବିଚାରଣ । ୧ । କୃଷ୍ଣ ଦରଶନେ ବିପ୍ରେ ଗମନ କରି । ବାଳକେ ଖେଳନ୍ତି ସାମ୍ବକୁ କଲେ ନାରୀ । ପେଟେ ଲୋହ ଖପରି । ଗର୍ଭିଣୀ ସ୍ତ୍ରୀର ପରି । ଋଷି ଯେ ଶ୍ରମ ପାଇ । ଆସନ୍ତି ପଥ ହୋଇ । ଗର୍ଭ ପ୍ରଶ୍ନ ଅର୍ଥେ । ପୁଚ୍ଛିଲେ ବାଳସ୍ତେ । ଋଷି ଯେ କୋପ ବହି । ବରଦ ହେଲେ ତହିଁ । ଯାତ ଲୋହ ମୂଷଳ । ନାଶିବ ଯଦୁକୂଳ । ସେ ହେଲା ନିଷ୍ଠୁର ମୂଶଳ ଉତପନ । ୨ । ସେ ମୂଷଳ ନେଇ ଘଷି ପଟ ଭଣିଷେ । ତହିଁରୁ ପନ୍ତ୍ରାବଣ ଜାତ ପ୍ରତକ୍ଷେ । ଶେଷ ଯେ ଯାହା ରହି । ତାହାର କାଣ୍ଡ ହୋଇ । ବସୁଦେବେ ନାରଦ, କହି ଜ୍ଞାନ ସମ୍ବାଦ । ନିମିଯଜ୍ଞ ପାଳରେ । ନବଋଷି ମିଳିଲେ । କହ ହବ ଅନ୍ତରୀକ୍ଷ । ପିପଲାୟନ ଲକ୍ଷ । ଦ୍ରାବିଡା କରହୋଚ, ଚମସ ପ୍ରବୋଧନ । କର ଭାଜନ ଆଦ ନବ ଋଷିଗଣ । ୩ । ସପତଦ୍ୱୀପେ ଭରତ ହୋଇଣ ରାଜା । ଯେ ପୁଣ ସଯାରୁ ସର୍ବ କଲେଇ ତେଜ୍ୟା । ନ ଖଣ୍ଡ କର ମର୍ତ୍ତ୍ୟ । ନବ୍ରାଶେ କାଣ୍ଡି ଦେଇ । ଜନକ ଭକ୍ତିପୁଣ, କହି କର୍ମ ଅକର୍ମ । ପ୍ରଳୟ ଯେଉଁ ମତେ । କୃଷ୍ଣାବତାର ଯେତେ । ବସୁଦେବେ ନାରଦ । କହି ସକଳ ଭେଦ । ଦେବଙ୍କ ବାକ୍ୟେ ହରି । ଯଦୁନାଶ ବିଗ୍ରହ । ଉଦ୍ଧବେ ଧର୍ମ

ଉପବେଶ କହୁ ପୁଣି । ୪ । ଯଦୁସଙ୍ଗ ସଙ୍ଗେ ଅବଧୂତ ମେଳଣ । ଚବଶ ଗୁରୁ ପ୍ରସଙ୍ଗ କଲେ ଆଖ୍ୟାନ । କୃଷ୍ଣୋଦ୍ଧବ ସମ୍ବାଦ । ଉଦ୍ଧବ ମୋହ ଛେଦ । ଜ୍ଞାନ ଯେ ଧ୍ୟାନ କର୍ମ । ପୂଜା ପାଷଦମାନ । ଜ୍ଞାନ କଣ୍ଟଲ ଭକ୍ତି । ଅବତାର ବବୃତ୍ତ । ସନ୍ୟାସ ଅଉ ଗୃହୀ । ଭକ୍ତି ଉଦେଶ କହୁ । କର୍ମ ଯୋଗ ବଧାନ । ଭକ୍ତ ଭକ୍ତି ଲକ୍ଷଣ । ଉଦ୍ଧବରେ ରହି ପାଦୁକା ସମର୍ପଣ । ୫ । ବଦ୍ରିକାଶ୍ରମେ ଉଦ୍ଧବ ତପେ ବେଶରେ । ଦ୍ୱାରକା ଉତ୍ପାତେ ପ୍ରଭାସସ୍ଥର୍ଥେ ଗଲେ । ବାରୁଣି ମଦ୍ୟପାନ । ଯାଦବେ ଅନ୍ୟ ଅନ୍ୟ । ଏରକା ବନେ ଯୁଦ୍ଧ । ସବେ ହେଲେ ନକ୍ଷୋଧ । ତନ୍କେ ପଦ୍ମନ ଶିର । ବଂଶାବ ହଳଧର । ସର୍ପରୂପ ଧର । ବୈକୁଣ୍ଠ ବଜେ କର । ମାଘ ଅମାବାସ୍ୟାରେ । ପ୍ରଭୁ ଅଣ୍ଟସ୍ତ ଭଲେ । ଯା'ଶ୍ର ଷବର ପାଦେ ଶରଘାତ ପୁଣ । ୬ । ଶ୍ରୀକୃଷ୍ଣ ବର୍ଣ୍ଣନେ ଯାସ ସ୍ୱର୍ଗକୁ ଗଲ । ସ୍ୱର୍ଗେ ଦେବତାମାନଙ୍କୁ ଦର୍ଶନ କଲ । କୃଷ୍ଣ ଯେ ଯୋଗ ଧ୍ୟାନେ । ଦାରୁକ ଦରଶନେ । 'ଦାରୁକ ମେଲୁ ଅଧି । ଦ୍ୱାରକା ପୁର ପେସି । ଶୁଣି କୃଷ୍ଣ ନୟନ, ସକଳେ ମନେ ଛନ୍ନ । ଶ୍ରୀ-ବନ୍ଧ ସ୍ୱର୍ଗେ ଗତ । ଯଦୁ ସଂହାର ହୋନ୍ତି । ସେ ଅଷ୍ଟ ପାଟବଣି । ବନ୍ଧ୍ୟ ଅନଳେ ପଶି । ଶେଷ ନାଗଙ୍କ ପେନ ତନେ ଅରଜୁନ । ୭ । ତବକ୍ରେ ସମୁଦ୍ର ଦ୍ୱାରକାକୁ ଗ୍ରସଣ । ରହିଲା କେବଳ ନବାସ ଏକ ସ୍ଥାନ । ତହୁଁ ସେ ବାର ପାଥ । ଗାଣ୍ଡୀମ ବହୁ ସାଥ । କୃଷ୍ଣ ଯେ ଅନ୍ତର୍ଦ୍ଧାନ । ଶୀଳାରୂପ ଧାରଣ । ଦ୍ୱାରକାରେ ଗଚ୍ଛନ । ଅନରୁଦ୍ଧ ନନ୍ଦନ । ହସ୍ତିନାପୁରେ ରଜ । ଅଭିମନ୍ୟୁ ତନୁଜ । ବହୁ ପରୀକ୍ଷ ନାମ । ପାଳଇ ପ୍ରଜାଗଣ । ଏ ଅନନ୍ତରେ ରସ ଶୁଣ ସାଧୁଜନ । ୮ । ପରୀକ୍ଷ ରାଜନ ହେଲେ ହସ୍ତିନା ପୁରେ । ପାଣ୍ଡବେ ହମାଳେ ସ୍ୱର୍ଗେ ଗମନ କଲେ । ଏଠାରୁ ଏକାଦଶ । ତଦଶ ଅଧ୍ୟା ଶେଷ । ପ୍ରାକୃ-ତରେ ପ୍ରକାଶ । ଶ୍ରୀଜଗନ୍ନାଥ ଦାସ । ତହୁଁ ମୁଁ ସଂକ୍ଷେପରେ । କଲି ଟୀକା ଘତରେ । ଦୋଷ ନ ଧର ଘେ । ପାର୍ଥନା କରେ ଏଣେ ।

ଶ୍ରୀଯଶୋବନ୍ତ ଦାସ । ନିକଟେ ମୋର ବାସ । ଜଗନ୍ନାମ ଷମୂ ଚ୍ଛେଦିତ ଅଧମ । ୯ ।

ଦ୍ୱାଦଶ ସ୍କନ୍ଧ । ରାଗ—ଶୁଣି ଏ ସଜ୍ଜନଭରଣ ବୃତ୍ତେ ।

ଉତ୍ତମନା ଦ୍ୱାଦଶସ୍କନ୍ଧେ ଭାଗବତ ।
ଶୌନକ ଅଗ୍ରରେ ଯାହା କହୁ ଅଛନ୍ତି ସୂତ । ପଦ ।

ଏ କଳିଯୁଗ ପ୍ରବେଶ । ବର୍ତ୍ତମାନ ରାଜା ବଂଶ । ଭବିଷ ରାଜାଙ୍କ ଭୋଗ ନିର୍ଣ୍ଣୟଦେଶ । କଳିଯୁଗ ଧର୍ମ ଗତି ଅଟେ ପ୍ରକାଶ । ଚତୁର୍ଥ କଣ୍ଠି ଯେ ଧର୍ମାଧର୍ମ ଜ୍ଞାନ ପ୍ରବୃତ୍ତ । ୧ । ପ୍ରାଣିମାନଙ୍କ ବିନାଶ । ସୃଷ୍ଟି ସର୍ଜନା ଯେ ଶେଷ । ପ୍ରଳୟ ହେତୁ ନିମିତ୍ତ ଅନୁକରଣ । ପ୍ରାକୃତଙ୍କ ପ୍ରଳୟ ବର୍ଣ୍ଣନ ଶେଷ । ପରୀକ୍ଷ ଚିତ୍ତକୁ ଶୁକ ଦେବ ଉପଦେଶ । ୨ । ପରୀକ୍ଷ ଶ୍ରୀକୃଷ୍ଣଠାରେ । ନିମଗ୍ନେ ଧ୍ୟାଇ ଚିତ୍ତରେ । ବ୍ରହ୍ମ ଶାପୁଁ ତକ୍ଷକ ଦଂଶନ ହେବାରେ । ଧନ୍ୱନ୍ତରୀ ତକ୍ଷ ଦର୍ଶନେ ମୃତ୍ୟୁ ଦହଲେ । ତକ୍ଷକ ପୁଣ କପଟେ କୃମୀରୂପରେ ଦଂଶିତ । ୩ । ବସ୍ତୁଭକ୍ତ ପଦଘିତ । ବଇକୁଣ୍ଠ ପଦପ୍ରାପତ । ଜନ୍ମେଜୟ ନୃପ ସର୍ପ ଯଜ୍ଞକଲତ । ଶୁଦ୍ଧ ବେଦ ଶତ୍ରୁଶାଖା ପୁରାଣ ଉକ୍ତ । ମାର୍କଣ୍ଡର ଚରିତ ତପ ଯେ ଦୃଢ ଯେ-ମତ୍ତ । ୪ । ପ୍ରଳୟର ପ୍ରଭବତ । ଋଷିଙ୍କ ଗର୍ଭେ ସମ୍ଭୂତ । ପ୍ରଳୟେ ଅନ୍ତର ହର ଉମା ଦୃଶ୍ୟତ । ମାର୍କଣ୍ଡ ଋଷି ଦେବ ତପ ପାତ । ମହାପୁଂସ ନିର୍ଣ୍ଣୟ ଯେ ଶୁଣିବାରେ ତୋଷ ଚିତ୍ତ । ୫ । ଶଙ୍ଖ ଚକ୍ରା-ୟୁଧମାନ । ବିବିଧ ଅଳଙ୍କାରଣ । ତାଙ୍କ ଯେତେ ଗୁଣ ଚ୍ଛେଦିତ ଛନା ଗୁଣ । ହେବେ ପୁଚ୍ଛିବାରୁ ସବୁ କହିଲୁ ପୁଣ । ପୃଥ୍ୱୀ ଯେ ସୂର୍ଯ୍ୟମୟ ନିର୍ଣ୍ଣୟ ଦ୍ୱାଦଶ ଦଶ୍ୟା । ୬ । ରଥମଣ୍ଡଳ ବିହାର । ଗନ୍ଧର୍ବ ବିଦ୍ୟା-ଧର । ଅପ୍‌ସରା ରାକ୍ଷସ ନାଗାଦ ଭୂଷିବାର । ବାର୍ ମାସ ନିର୍ଣ୍ଣ ସବ ଶୁଣ ହେ ବୀର । ତଦନ୍ତରେ ଉଥିବାର ବ୍ୟାସ କଲା ଜଗମିତ । ୭ । ଅହୁଁ ଦ୍ୱାଦଶ ପର୍ଯ୍ୟନ୍ତ । କହିଲୁ ଟିକ ଚରିତ । ଅଷ୍ଟାଦଶ ପୁରାଣ ଅଟେ ଉକତ । ଚତୁର୍ବିଂଶ ଟୀକା କହୁ ଯେ ଭବିଷତ । ଅଧ୍ୟା-

ଯେ୍ ଅଟଇ ପଞ୍ଚବିଂଶ ଛନଶତ । ୮ । ଭାଷା ପ୍ରାକୃତ ବନ୍ଧରେ । ଦ୍ୱନ୍ଦ୍ୱ ସପ୍ତାର ଭେଦରେ । ବାର ମାତ୍ରା ପଗ୍ଣ ଅକ୍ଷର ବନ୍ଧରେ । ବେଦ ପୁରାଣାଦ ଯେତେ ଏ ଚରାଚରେ । ସକଳ ଠାବରେ ବେଶ ପୁରୁଷୋତ୍ତମେ ଜଗନ୍ନାଥ । ୯ । ଜଗନ୍ନାଥ ଦାସ ବାରସ୍କନ୍ଧ ଶେଷ ପ୍ରାକୃତର । ସୁତ ଟୀକା କଲ ଶମ୍ଭୁନାଥ ପ୍ରସ୍ତର । ଶେଷ ସକ ଅଠରଶ ଅନେଷଠରଂ । ଅପ୍ରେଲ ଏଗାର ଭୌମ ବାରଦନ ଦଣ୍ଡା ସାତ । ୧୦ ।

ସମାପ୍ତ ।

---